ଷାବିଭାଗର ଡାଇରେକ୍ଟର ମହୋଦୟଙ୍କ ତା୩୦।୭।୫୪ରିଖ ନମ୍ବର
ନୋଟିସରେ ଅଷ୍ଟମ ଶ୍ରେଣୀର (Poetry text) ରୂପେ ନିର୍ବାଚିତ

---

# କୈଶୋରିକା

ରାଧାମୋହନ ଗଡ଼ନାୟକ

ଆଠ ଅଣା

# ସୂଚୀ

# କୈଶୋରିକା

## ଭାରତର ନୂଆ ଛାତ୍ର

୧

ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ଛାତ୍ର,
ଶୁଆ ପର ଆଉ ଘୋଷିବୁ ନାହିଁ ରେ
ଅନ୍ଧ ବଧିର ଶାସ୍ତ୍ର ।
ଆମେ ଆଗାମୀ ଯୁଗର ଦ୍ରଷ୍ଟା,
ଆମେ ଆଗାମୀ ଦେଶର ସ୍ରଷ୍ଟା,
ଜୀବନର ନୂଆ ଉତ୍ସେ ଭରିବୁ
ବର୍ତ୍ତମାନର ପାତ୍ର,
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ଛାତ୍ର ।

୨

ବିଶ୍ୱ ଭୁବନ ଦେଖିବୁ ଆମେ ରେ
ବିଦ୍ୟାପୀଠର ଅଙ୍କେ,
ରୁଦ୍ର ଜୀବନ ସ୍ୱପ୍ନ ଲେଖିବୁ
କ୍ଷୁଦ୍ର ଆମର ବକ୍ଷେ ।
ଆମେ ଗଗନର ପଥେ ଉଡ଼ିବୁ,
ଆମେ ଜଳଧିର ଜଳେ ବୁଡ଼ିବୁ,
ଅସୀମ ଧରାର ପଥେ ପଥେ ଆମେ
ଘୂରିବୁ ଦିବସରାତି,
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ଜାତି ।

୩

ନୂଆ ଧରଣୀର ସୈନିକ ଆମେ
ହେବୁ ଏ ଧରଣୀ ବକ୍ଷେ,
ଆପଣା ବୁକୁର ରକ୍ତ ଢାଳିବୁ
ଧରାର ମହତ ଲକ୍ଷ୍ୟ ।
ଯେତେ ଅନ୍ୟାୟ ପରିବେଦନ
ଆମେ ଧରାରୁ କରିବୁ ଛେଦନ;
ବଜ୍ରେ ଗଢ଼ିବୁ ବକ୍ଷ ଆମର
ପାଷାଣେ ଗଢ଼ିବୁ ଗାତ୍ର,
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ଜାତି ।

ଅମର ମାଟିର ଗୌରବ ବୁଝି
ହେବୁ ଏ ମାଟିର ଭକ୍ତ,
ସୁନାର ଫସଲ ଲହରାଇ ଦେବୁ
ସିଞ୍ଚି ବୁକୁର ରକ୍ତ ।
ଆମେ ନୂତନ ଦୁନିଆ ଗଢ଼ିବୁ,
ଆମେ ମଣିଷ ସମାଜ ଚାଳିବୁ,
ମାଟିର କୁଟୀର ଆସନେ ପୂଜିବୁ
ଆମ ଲଙ୍ଗଳ ଦାଢ଼,
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ସ୍ୱପ୍ନ ।

୪

ଭେଦର ପାଚେରୀ ଭାଙ୍ଗିବୁ ଆମେ
ନ ମାନିବୁ ଜାତି ଧର୍ମ,
ଜୀବନେ ଜୀବନେ ଖେଳାଇ ଦେବୁ ରେ
ମଣିଷ ଜାତିର ମର୍ମ ।
ଆମେ ଜଗତର ସେବା କରିବୁ,
ଆମେ ବ୍ୟଥିତର ବ୍ୟଥା ହରିବୁ,
ପ୍ରାଣେ ପ୍ରାଣେ ଆମେ ପଙ୍କଜ ସମ
ଫୁଟାଇବୁ ସୌଭ୍ରାତ୍ର,
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ସ୍ୱପ୍ନ ।

୬

ହିମାଚଳ ପରି ଉର୍ଦ୍ଧ୍ୱେ ଉଠିବୁ
ହେବୁ ଆମେ ଅନ୍ତ ଉଚ୍ଚ,
ସାଗର ପରାଏ ବକ୍ଷେ ବହିବୁ
ଲକ୍ଷ ଭାବର ଉତ୍ସ ।
ପୂର୍ଣ୍ଣ ଆପଣାକୁ କରି ନିଃସ୍ୱ
ଆମେ ଭରିବୁ ଅଖିଳ ବିଶ୍ୱ,
ଭାରତ ମାଟିର ବଢ଼ାଇବୁ ମାନ
ଲକ୍ଷ୍ୟ ଏତିକି ମାତ୍ର—
ଉଦୟ ପଥର ଯାତ୍ରୀ ଆମେ ରେ
ଭାରତର ନୂଆ ଛାତ୍ର ।

---

# ସ୍ୱାଗତ ଲକ୍ଷ୍ମୀ ପଉଷ

ଆଣି ନାହିଁ ତୁମେ ମନମତାଣିଆ ଜୋଛନା
କରି ନାହିଁ ତୁମେ ଫୁଲ-ମଉଛବ-ରଚନା,
ଭରୁ ନାହିଁ ତୁମେ ମଳୟର ମଧୁ ସୁହାଗ
ଢାଳୁ ନାହିଁ ତୁମେ ଶେଫାଳୀର ବାସ ତଆଗ,
ଶୀତ କୁହୁଡ଼ର ପାଣ୍ଡୁର ବେଶ ବସନେ
ଆସିଅଛ ତୁମେ ଧରଣୀର ଭୂଇଁ ଆସନେ ।
ସ୍ୱାଗତ ଲକ୍ଷ୍ମୀ ପଉଷ,
ଘରେ ଘରେ ତୁମେ ଆଣିଛ ଅନ୍ନ ଆୟୁଷ ।

ସୁଖର ପରଶ ଖେଳାଇ ଭବନେ ଭବନେ
ସୁଖର ପଉଷ ଆସିଛ ଭାରତ ଭୁବନେ ।
ତୁମ ପାଦଲାଗି ଶୀତ କୁହୁଡ଼ର ଜୁଆରେ
ପଦ୍ମ ଫୁଟିଛି ପଲ୍ଲୀ ଦୁଆରେ ଦୁଆରେ ।
ବରଷ ଯା ଖଟି ଖଟି ଏ ମାଟିର ମଣିଷ,
ପାଇଅଛୁ ଆଜ ବାଞ୍ଛିତ ତାର ଜୀବନସ ।
ଖଳାରେ ଖଳାରେ କଳେଇ ଗଦାର ସୁଷମା
ସକଳ ନୟନେ ଦିଶୁଛି ଅତୁଳା ଅସମା ।
ପିଠଉର ଝୋଟି ମେଢ଼ି ପାଟେ ଲେଖି ହରଷେ
ପଲ୍ଲୀ-ଘରଣୀ ଲକ୍ଷ୍ମୀ ପୂଜଇ ବରଷେ ।
ମିଠା ପିଠା ପଣା ଖାଇବାର ଭଲ ଦରବ
ଦୁଆରେ ନୂଆରେ ଗାଆଁରେ ଲାଗିଛି ପରବ ।
ଧାନ-ବେଙ୍ଗଲା, ଚଷାପୁଅ-ଗୀତ-ଲହର
ମୁଖର କରଇ ସହରର ପହର ପହର ।

ଧାନ ମୁଗ ବିରି ଭ୍ରମର ଯେତେକ ରତନ
ଚଷାପୁଅ ନେଇ ଘରେ ରଖେ କରି ଯତନ ।
ସ୍ୱାଗତ ଲକ୍ଷ୍ମୀ ପଡ଼ିଷ,
ଘରେ ଘରେ ତୁମେ ଆଣିଛ ଅନ୍ନ ଆୟୁଷ ।

ଗାଆଁର ସୀମାରେ ଆଖୁ ପେଡ଼ା ଏବେ ଲଗିଚି
ବାଳକ ମହଲେ ନୂତନ ଜୀବନ ଜାଗିଚି ;
ଗୁଡ଼ଖିରଙ୍କର ଯୋଜନଗନ୍ଧା ସୁବାସ
ଘୁଲକେ ଭରଇ ପଲ୍ଲୀର ପ୍ରତି ନିବାସ ।
କିଶୋରୀ-ବାଳିକା ରବିବାର ଓଷା ପାଳଇ
ଘର ଘର ବୁଲି ମନଖୋଲି ଗୀତ ଢାଳଇ ।
ହରଷର ତେଜ ଗାଆଁରେ ଗାଆଁରେ ଉଥଳେ
ଲକ୍ଷ୍ମୀ ପୂଜା ଲାଗିଅଛି ଆଜ ଭୂତଳେ ।
ସ୍ୱାଗତ ଲକ୍ଷ୍ମୀ ପଡ଼ିଷ
ଘରେ ଘରେ ତୁମେ ଆଣିଛ ଅନ୍ନ ଆୟୁଷ ।

---

# ମାତଙ୍ଗିନୀ ଦେବୀ

୧

ତମଲୁକ୍‌ର ରାସ୍ତାପରେ
ବଷଠ ଚଠ୍ଆର
ଅଗଷ୍ଟର ମୁକ୍ତି ରଣେ
ହେଉଛି ଆଗୁସାର ।

ଇନ୍‌କିଲାବ ଜିନ୍ଦାବାଦ
ଭାରତ ମାତା ଜୟନାଦ
ଉଠଇ କୋଳାହଳ,
ଝଡ଼ର ତାଳେ ଉଚ୍ଛୁଳେ ଯଥା
ଅମ୍ବୁଧିର ଜଳ ।

୨

ଅଗ୍ରଭାଗେ କିଏ ସେ ନାରୀ
କିଏ ସେ ବୀରନାରୀ ?
ବଜ୍ରାନଳେ ବାନ୍ଧି ହିଆ
ଦର୍ପେ ଅଛି ଗୃଳ ।

ଏକଇ ହାତେ ଧରିଛି ଦେଖ
ମାଙ୍ଗଳିକ ଶଙ୍ଖ ଏକ
ବାଜୁଛି ଥରେ ଥରେ
ଊର୍ଦ୍ଧ୍ୱ ଦେଶେ ଜାତୀୟ ଧ୍ୱଜା
ଢୋଳିଚ ଆନ କରେ ।

୩

ତମଲୁକ୍‌ର ନେତ୍ରୀ ସିଏ
ମାତଙ୍ଗିନୀ ଦେବୀ
ଜୀବନ ତାର କଟାଇ ଅଛି
ମାତୃଭୂମି ସେବା ।

ଦେଶର ଲାଗି ବରିଣି କାରା,
ଢାଳିଛି ଦେହୁ ରୁଧିର-ଧାରା
ଜଗାଇ ଅଛି ପ୍ରାଣ,
ବିଦେଶୀ ହାତୁ ଗୁହ୍ନେଁ ସେ ଆଜ
ଦେଶର ପରିତ୍ରାଣ ।

୪

ବନ୍ଦିମାନ କଣ୍ଠୁ ତୋଳି
ଡାକଇ ବୀର-ନାରୀ,
"ବିଦେଶୀ ମୁଖେ ଗୁହ୍ନଁ ନା ଆଜ
ମୁକ୍ତି ଆଶେ ଖାଲି ।

ଭୁଲ ରେ ଭୁଲ ଚୁକ୍ତି ତୋର,
ମୁକ୍ତି ଆଜି ହାସଲ କର,
ମୁକ୍ତି ଲଢ଼ି ନିଅ,
ବିଦେଶୀ ପାଶେ ଭିକ୍ଷା ତୋର,
ନୁହଇ ଆଉ ପ୍ରିୟ ।

୫

ଆମର ଘର ଧ୍ୱଂସ ଲାଗି
ଏଇଠି ସବୁ ପୋଷା
ଇଂରେଜଙ୍କର ସିପାହି ଦଳ
ଆମର ଲହୁ-ଶୋଷା ।

ଉଚେ ତୋଳ ଭୁଙ୍ଗ ଶିର
ଆଗେଇ ଚାଲ ମତ୍ତ ବୀର
ଦଖଲ କର ଥାନା,
ଦର୍ପେ ଆଜ ଉଡ଼ା ରେ ତୋର
ସ୍ୱାଧୀନତାର ବାନା ।"

୬

ହୁକୁମ ପାଇ ମାଞ୍ଚଲେ ତେଣେ
ସିପାହି ସେନା ଦଳ,
ପଦ୍ ଚୋଟା ଶୁଣିଲେ ଯଥା
ସର୍ପ ବିଷଧର ।

ପ୍ରବଳ ତାନେ ଚାଲିଲା ଲାଠି
କାହାର ମଥା ଗଲା ରେ ଫାଟି,
ଦେହରୁ ଲହୁ ପାତ,
କାହାର ପାଦ ଜଖମ ହେଲା
ଭାଙ୍ଗି ଗଲା ହାତ ।

୭

ଥାନାର ଦ୍ୱାରେ ତଥାପି ଜୋରେ
ଗୁଳିଲ ପଞ୍ଚୁଆର
ଥମି କି ପାରେ ଶତ ଯାର
ମୁକ୍ତି-ମନ୍ତ୍ରୁଆଳ ?

ଇନ୍‌କଲବ ଜନ୍ଦାବାଦ
ଭାରତମାତା ଜୈୟନାଦ
ଉଠିଲ ବାରବାର,
ଥାନାର ଦ୍ୱାରେ ତଥାପି ଜୋରେ
ଗୁଳିଲ ପଞ୍ଚୁଆର ।

୮

ବନ୍ଦିମାନ କଣ୍ଠୁ ଟ୍ରାଣି
ଡାକଇ ବୀର-ନାରୀ
"ଆରେ ରେ ସବୁ ଦେଶଦ୍ରୋହୀ
ବିଦେଶୀ ଧ୍ୱଜାଧାରୀ ।

ରଖିଛ ତୁମେ କାହାର ମାନ
ନେଉଛ ତୁମେ କାହାର ପ୍ରାଣ ?
ଲଜ୍ଜା ନାହିଁ ଆରେ,
କାହାର ସେବା କରୁଛ ତୁମେ
କାହାର ଲହୁ ଧାରେ ?"

୯

ଅକସ୍ମାତ୍ ଗୋଟାଏ ଗୁଳି
ଆସିଲା ଛୁଟି ଖରେ
ଗଲା ରେ ଭେଦି ମାତଙ୍ଗିନୀ
ଦେବୀର ବାମ କରେ ।

ଆହତ ତେବେ ପତାକା ତୋଳି
ଆହତ ତେବେ କଣ୍ଠ ଖୋଲି
ବୋଲଇ ବୀରନାରୀ
"ଝଣ୍ଡର ମୁହିଁ ଭକ୍ତ, ମତେ
ପାରିବ କିଏ ମାରି ?"

୧୦

ଆହତ କେ ଆସିଲା ଗୁଳି
ଆସିଲା ବେଗେ ଛୁଟି,
ଛିଦ୍ର ଘାତେ ଡାହାଣ ହାତେ
ଗଲା ରେ ଗଲା ଫୁଟି ।

କ୍ଷତର ମୁଖୁ ରୁଧିର ଧାର
ରଚିଲା ଏକ ଅରୁଣ ଗାର;
ତଥାପି ବୀରନାରୀ,
ଊର୍ଦ୍ଧ୍ୱେ ତୋଳି ଧରିଚି ଧ୍ୱଜା
ଦର୍ପେ ଗୃଳି ଗୃଳି ।

୧୧

ଦୃଷ୍ଟସ୍ଥ ବାର ଲଲାଟ ପଟେ
ବାଜିଲା ଗୁଳି ଏକ
ରକ୍ତର ସେ ଚିହ୍ନ ଦେଖ
ବିଜୟ-ଟୀକା ଦେଖ ।

ଛିନ୍ନ ସତେ ଶାଖୀଟି ପରି
ବୀରାଙ୍ଗନା ପଡ଼ିଲା ଟଳି
ପଥର ଧୂଳି ପରେ ;
"ମାତଙ୍ଗିନୀ ଦେବୀର ଜୟ"
ଉଠିଲା ଶତ ସ୍ୱରେ ।

୧୨

ଜନମ ମାଟି ମାଆର ସେଇ
ଚରଣ ତଳେ ଅବା,
ହାୟ ରେ ହାୟ ପଡ଼ିଲା ଲୋଟି
ଲାଲ ସେ ଏକ ଜବା ।

ତରୁଣ ତାର ଅରୁଣ ରେଖା
ଦେଶର ବୁକେ ରହିଲା ଲେଖା
ଯୁଗକୁ ଯୁଗ ଧରି,
ନିଶାର ଶେଷ ଅନ୍ଧକାରେ
ଉଷାର ଆଭ୍ର ପରି ।

---

## ଆମ ଲକ୍ଷ୍ମି ଲୁଗା ଏଦ୍ଧ

ସତ୍ୟବାଦୀର    ନବଢ଼ ବଉଳ
ଛୁଇଁଅନା ତରୁ ଛାଇ
ହସୁଥିଲା ବନ-  ବିଦ୍ୟାପୀଠର
ଧାତ୍ରୀ ମୟୂଖ ପାଇ ।
ସଇନିକ ହୋଇ  ଚଳାଇବେ ବୋଲି
ଦେଶର ମୁକତି-ରଣ
ପ୍ରାଣ ଗଢ଼ୁଥିଲେ  ଦେଶର ତରୁଣ
କିଶୋର ଛାତ୍ରଗଣ ।
ସତ୍ୟବାଦୀର  ଆଶ୍ରମ ବାସେ
ତରୁଣ ଜୀବନ ମେଳେ
ଦେଶର ସେବକ  ଉତ୍କଳମଣି
ରହୁଥିଲେ ବେଳେ ବେଳେ ।

ବୁନକର ଡାକ   କହିଦେଲେ "ଭାବ,
ଲୁଗା ଆଜ ମୋର ନାହିଁ,
ଭଲ କରି ଦେଖି  ଲୁଗା ଖଣ୍ଡିଏ
କଣି ଆଣ ମୋହ ପାଇଁ ।"

ସ୍ନାହାନରୁ ଫେରି  ମୋ ଦେଶ ବନ୍ଧୁ
ଦେଖିଲେ ହରଷଭରେ,
ନୂଆ ଲୁଗାଟିଏ   ଥୁଆ ହୋଇଅଛି
କାଠର ଚଉକ ପରେ ।

ଖୋଲିଖୋଲି କରି ଦେଖା ଗୁହାଁ କଲେ
କହିଲେ, "ରେ ଭାବଗ୍ରାହୀ,
ଏଡ଼କ ପତଳା   ଏଡ଼େ ବଡ଼ ଲୁଗା
ମୋର ତ ଚଳିବ ନାହିଁ ।

ଯେଉଁ ମୂଲକରେ  ମଣିଷ ପାଏ ନ
ପିନ୍ଧିବା ପାଇଁ ବାସ,
ଯୋଡ଼ହେଲ ବିନା  କଷ୍ଟେ ଯାପଇ
ଶୀତ ବରଷାର ତ୍ରାସ ।

ଗାଆଁରେ ଗାଆଁରେ କାହିଁ ବନ୍ଧୁ, କାହିଁ
ନବ ଯଉବନୀ ଝିଅ
ସାତସିଆଁ ଚିରା   ବସନରେ ଆହା
ଲୁଚଇ ପାରୁ ନ ଦେହ ।

ବରଷ ବରଷ    ନଈବଢ଼ି ହୋଇ
ଗାଁ ଘର ଯାଏ ଡୁବି,
ବରଷା ଅଭାବେ    ନଆଁ ଜଳେ କାହିଁ
ଗୃହବାସ ଯାଏ ଉଭି ।

ଅଭିଶପ୍ତ ଏ    ଗରବ ଦେଶରେ
କହ ଆଜ କେଉଁପରି ?
ବିବେକ ନନ୍ଦ    ଏ ଲୁଗା ପିନ୍ଧ
ଗୃଳବ ଅବୋଧ ଭଳ ।”

ନୂଆ ବସନଟି    ସେଇଠି ସେମିତ
ଚଉକି ଉପରେ ଥୋଇ
ତଳେ ବସିପଡ଼ି    ଉପାସନା କଲେ
କାତର ହୃଦୟ ହୋଇ ।

ଆକୁଳ ଅଶ୍ରୁ    ଜଟିଳ ଶ୍ମଶ୍ରୁ
ଅଚିରେ ଧଉଳ କର
ଦରଦୀ ପ୍ରାଣର    ବକ୍ଷ ଉପରେ
ପଡ଼ିଲ ହାପୁ ରେ ଝର ।

ବିଶ୍ୱର ଲଗି    ଅବିରତ ଜାଗି
ଭାଳଇ ଜୀବନ ଯାର
ନିଃସ୍ୱ ଦଳିତ    ପ୍ରାଣର ବ୍ୟଥାରେ
ନୟନୁ ଝରଇ ଧାର ।

ଉପାସନା ସାରି   ଦେଖିଲେ ଆମର
ଗରିବ ଦେଶର ସଖା
ଚିରୁବ ଜାଗାରେ ସ୍ଲେଟ ଲୁଗାଟିଏ
ସେମିତି ହୋଇଛି ରଖା ।

ପିନ୍ଧିଲେ ଅଣ— ଓସାର ଲୁଗାଟି
ଆଣ୍ଠୁ ଲୁଚିଲ ନାହିଁ,
ହୃଦ ଖୋଲି ଦେଇ କହିଦେଲେ, "ବାବୁ,
ଆମ ଲକ୍ଷ ଲୁଗା ଏଇ ।"

---

# ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ

୧

କାବ୍ୟ ତାର ବିଦାୟ ନେଇ
ନନ୍ଦନ ପଥୁଁ ହେଲାଣି ଦୂର,
ସପ୍ତର୍ମୀର ଚନ୍ଦ୍ର ଲେଖା
ଶୁହଁଚ ତୁମ ରଶ୍ମି ପୂର ।

ନୀଳରେ ସୃଜ ଫେନିଳ ଶିରୀ
ଚନ୍ଦ୍ରଭାଗା-ସିକତା ଭିଡ଼
ଉଦ୍‌ବେଳଇ ବରୁଣ
ଆସୁନ କାହିଁ ସୂର୍ଯ୍ୟ ତୁମେ
ଆସୁନ କାହିଁ ଅରୁଣ ।

୨

ଆକୁଳେ ନାଚେ ଲହରୀ ଦାମ
ଲୁଟିବ ତୁମ କିରଣ ମାଳା,
ପାଗଳେ ଛୁଟେ ଶିଶିର ବାଆ
ଲଭିବ ତୁମ ହିରଣ ଧାରା ।

ଶୁହଁଚ ଏଇ ସିକତାବେଳା
ଦେଖିବ ଧରା-ସ୍ୱର୍ଗ ମେଳା,
ଆସୁ ନ କାହିଁ ଅରୁଣ ?
କନକ କର ବର୍ଷି ରସେ
ବର୍ଣ୍ଣ କାହିଁ ଭରୁ ନ ?

୩

ପୂଜନ ଘରେ ବସିଚୁ ଆଜ
ବସିଚୁ ଆମେ ବହୁତ ସାଥି,
ଉଦୟ ଲୀଳା ଦେଖିବା ପାଇଁ
ଆବେଗେ ଭର ଉଠଇ ଛାତି ।

ଜାଣ ତ କେତେ ସନ୍ଧୀ ଥିଲ
ବରଷ ଆମେ ଯାତ୍ରା-ଲୀଳା
ଶୃଙ୍ଗଁରୁ ଧିର ନୟନେ ;
ଆସୁ ନ ତୁମେ ସୂର୍ଯ୍ୟ କଅାଁ
ଆସୁ ନ ତୁମ ଅୟନେ ?

୪

ବଉଦ ଖାଥି ବନ୍ଧୁ ସବୁତ !
ଦେଉଛ ରୋଧି ତୁମର ପଥ,
ଚକ୍ରବାଳ — ଅନ୍ତରୀକ୍ଷ
ଦଉଡଇ ଏକ-ଚକ୍ର ରଥ ।

ବର୍ତ୍ତିଧର ଏଇ କ ବାୟୁ
ତୁମର ପଥ ଅନ୍ତରାୟ !
ଯୋଗାଳେ ତୁମ ସରଣୀ
ଆସୁ ନ ତୁମେ ସୂର୍ଯ୍ୟ କଅାଁ
ଆସୁ ନ ତୁମେ ତରଣି ?

୫

ଉଦ୍‌ବେଗରେ ବସିଚୁ ଆମେ
ତୁଙ୍ଗ ଏଇ ବାଲିର ସ୍ତୂପେ,
ପ୍ରଥମ ତୁମ ଉଦୟ-ରୂପ
ଦେଖିବୁ ବୋଲି ପୂର୍ଣ୍ଣ ରୂପେ ।

ତୁମର ରୂପ ଦେଖିବା ପାଇଁ
ଆତାପୀ ଉଡ଼େ ପକ୍ଷ ବାନ୍ଧି,
ଉଚ୍ଚର କଆଁ ଗଗନ,
ଜାଣୁ ନ କେତେ ଅଧୀର ଆମେ
ଦେଖୁଚୁ ତୁମ ସପନ ?

୬

ଉଠିଲେ ଏଇ ସୂର୍ଯ୍ୟ ଦେଖ
ଉଠିଲେ ଏଇ ରଶ୍ମିଧର,
ସାଗର କୋଳୁ ଉଠିଲା ଜାଗି
ଦୀପ୍ତ ସତେ ବଡ଼ବାନଳ ।

ସାଗର କୋଳୁ କି ଅବା ଏଇ
ନିମେଷକରେ ପଡ଼ିଲା ଡେଇଁ
ଜ୍ୟୋତିର ଏକ ଚନ୍ଦ !
ଉଠିଲେ ଏଇ ସୂର୍ଯ୍ୟ ଦେଖ
ଉଠିଲେ ଏଇ ଅର୍କ ।

୭

ଉଠିଲେ ଏଇ ସୂର୍ଯ୍ୟ ଦେଖ
ଉଠିଲେ ଏଇ ରଶ୍ମି ଧାରୀ
ଗଗନ ନୀଳ ସାଗର ନୀଳ
ଚକ୍ରବାଳ ଦର୍ଶିଲୁ ବାରି ।

ପ୍ରକୃତିର ବକ୍ଷ ପରେ
ଝଲସି ଉଠେ ଦୀପ୍ତି ଭରେ
ଲୋହିତ ତେଜପୁଞ୍ଜ,
ଉଠିଲେ ଏଇ ଅଂଶୁମାନ
ଉଠିଲେ ଏଇ ସୂର୍ଯ୍ୟ ।

୮

ସ୍ୱାଗତ ଆହେ ସୂର୍ଯ୍ୟଦେବ
ସ୍ୱାଗତ ଆହେ ମରୀଚିମାଳୀ !
ଅନ୍ଧକାର ଭୁଟାଅ ତୁମେ
ଦୀପ୍ତ ତୁମ ମୟୂଖ ଜାଳ ।

ଧରଣୀର ଚକ୍ଷକର
ପୁଣ୍ୟ କୋଳେ ଉତ୍କଳର
କୋଣାର୍କର ଭୂଷଣ
ତମସା ନେଇ ଆଲୋକ ଦିଅ
ପୂଷଣ ଆହେ ପୂଷଣ ।

୯

ଗୋଟିଏ ମୋର ବାସନା ଦେବ
ଗୋଟିଏ ମୋର ପ୍ରଶ୍ନ ଆଜ
ତୁମର ଏଇ କୋଣାର୍କ ଯେ
ଭୂଇଁର ତଳେ ପଡ଼ିଚ ଗାଜ ।

ତମସା କଣ ତୁଟିବ ନାହିଁ ?
ପଦ୍ମ କଣ ଫୁଟିବ ନାହିଁ ?
ତୁମର କର ପରଶେ,
ଦେଉଳ କଣ ଉଠିବ ନାହିଁ
ଶିଳ୍ପ ଶିଳ୍ପୀ-ସରସେ ?

## ବନ୍ଧୁ

ଜାହ୍ନବୀର ଧୀର ସ୍ରୋତେ ଢଳ ଢଳ ଢଳ
ମନ୍ଦ୍‌ବେଗେ ନାଉରିଆ ବାହୁଥିଲା ତରୀ ।
ବସିଥିଲେ ଦୁଇ ବନ୍ଧୁ — ପୁଲକିତ ମନେ
ନ୍ୟାୟ ଦର୍ଶନର ଭାଷ୍ୟ ପଢୁଥିଲେ ଜଣେ,
ଶୁଣୁଥିଲେ ଆଉ ଜଣେ ।

କାଳମାର ଛୁଇ
ସହସା ଶ୍ରୋତାର ମୁଖେ ବଲ୍ଲେକ ନମାଇଁ
ପଚ୍ଚରିଲେ, "ଦେଖୁଅଛୁ ଏ କି ଭାବାନ୍ତର
ତୁମ ମନେ ?"

ସ୍ମିତ ସ୍ୱରେ ରଞ୍ଜି ଓଷ୍ଠାଧର
ଶୁଣାଇଲେ ରଘୁନାଥ, "ମୁଁ ବ ଅଛୁ ଲେଖି
ନ୍ୟାୟ ଦର୍ଶନର ଟୀକା, ତୁମେ ନାହିଁ ଦେଖି ।
ମନେ ମନେ ଥିଲା ମୋର ସ୍ପର୍ଦ୍ଧା ଅଭିମାନ,
ଧରଣୀର ତଳେ ମୋର ଯଶ, ମୋର ନାମ
ରହି ଯିବ ନ୍ୟାୟବିତ୍ ପଣ୍ଡିତ ମଣ୍ଡଳେ
ଯୁଗ ଯୁଗ ଧରି ମାନ୍ୟ ଅନ୍ତରେ ଅନ୍ତରେ
ଉପଲବ୍ଧି କରୁଅଛୁ ଆଚମ୍ବିତେ ଆଜ
ତ୍ରାଣେର ଦୁରାଶା ମୋର ଯାଇଅଛୁ ଭାଜ
ଅତର୍କିତେ । ତୁଳି ଅଛି ସୂକ୍ଷ୍ମ-ସ୍ୱଚ୍ଛତର
ବିଶଦ ସୁନ୍ଦର କାହିଁ ନ୍ୟାୟ ଦର୍ଶନର
ଭାଷ୍ୟ ତବ, କାହିଁ ମୋର ମ୍ରିୟମାଣ ଟୀକା
'ଦୀଧିତି' ନାମଟି ସିନା ମାତ୍ର କୁଜ୍ଝଟିକା ।"

"ମର୍ମେ ମର୍ମେ ସେଥିପାଇଁ ଭରି ଉଠେ ବ୍ୟଥା
ସେଥିପାଇଁ ବନ୍ଧୁବର ଏତେ ବକ୍ଷସ୍ତତା ?"

"ସେଥିପାଇଁ ନୁହେ ବନ୍ଧୁ, ବୃଥା ଅଭିମାନ
ଅକାରଣ ଅହଂକାର ମୋର ମନ, ପ୍ରାଣ
ଘେରି ରହିଥିଲା ଖାଲି ସେଥିପାଇଁ ଘୋର
ଆତ୍ମ ଗ୍ଳାନି ଭରି ଗଲା ମର୍ମେ ମର୍ମେ ମୋର ।
ଉତ୍କଳ ଭୂମିର ପ୍ରଜ୍ଞା, କାଳ କାଳ ତୁମେ
ଲଭ ଯଶ ଜ୍ଞାନଭୂମି ଏ ଭାରତ ଭୂମେ ।"

"ତୁମେ ଯେ ଲେଖିଚ ଗ୍ରନ୍ଥ," କହିଲେ ନମାଇଁ
ଶ୍ରେଷ୍ଠ ହୋଇ ରହୁ ତାହା ଯୁଗ ଯୁଗ ପାଇଁ ।"
ଗୃହୁଁ ଗୃହୁଁ ଛିନ୍ନ ଭିନ୍ନ କରି ଦେଇ ପୋଥି
ଫିଙ୍ଗି ଦେଲେ ସ୍ରୋତ ଜଳେ । ଆନନ୍ଦର ଜ୍ୟୋତି
ଝଟୁ ଥିଲା ବଦନ୍-ମଣ୍ଡଳେ ।

ରଘୁନାଥ
ଅନାଇଲେ—ଅସହାୟ ସ୍ଥିର ଦୃଷ୍ଟି ପାତ,
"ହେ ଭିକ୍ଷୁ ତୁମେ ରଚିଲ ଏ କି ତ୍ୟାଗର ବିନୋଦ ?
ବନ୍ଧୁରେ ବଞ୍ଚିତ କରି କି କଲ ନବୋଧ ?"

---

## ସତୀ ଚଉରା

ଜାଣେ ନାହିଁ ମୁଁ ତ ସତୀ ଚଉରା ଲୋ
କେବେ କେଉଁ ସତୀ ନାରୀ
ଝାସି ଚିତାନଳେ ତୋହର କୋଳରେ
ତନୁ ଦେଇ ଥିଲା ଜାଳି ।

ଜଳି ଯାଇ ଥିଲା ଚଉରା ମୂଳର
ସଞ୍ଜବତୀଟି ପର
ଚନ୍ଦନ ଖଣ୍ଡ କେତୋଟି ଦଣ୍ଡ
ଥିଲା ଉଜ୍ଜ୍ୱଳ କରି ।

ଜାଣିବାର ଅବା ଇଚ୍ଛା କାହିଁ ତ
ଜାଗୁ ନାହିଁ ହୃଦ ଘରେ
ତୃପ୍ତ ମୋହର ଜିଜ୍ଞାସା ଯାହା
ଦେଖୁଛି ମୋ ଆଖି ଆଗେ ।

ବୁଝି ପାରୁଅଛି ସତୀ ଚଉରା ଲୋ
ନୋହୁ ଶମଶାନ ଭୂଇଁ
ଉତ୍କଳ ବୁକେ ପୁଣ୍ୟ ପ୍ରଭାସ
ବାଣୀର ତୀର୍ଥ ଭୂଇଁ ।

୨

ପ୍ରକୃତ-କବ          ରାଧାନାଥ ଆଜ
କରାଳ ତୋହର କୋଳେ
ଶୈଳ ବନାମୀ          ତଟିନୀର ଶିଖ
ଦେଖଇ ଶରଧା ଭ୍ରେଲେ ।

ଭକ୍ତ-ଜୀବନ          ଶ୍ରୀମଧୁସୂଦନ
ଗୁରୁ ପାଦ ପାଶେ ବସି
ମୌନ ଧିଆନେ          ବ୍ରହ୍ମସାଧନେ
ନୀରବେ ଯାଇଛ ରସି ।

ଜୀବନ ରଙ୍ଗ—          ମଞ୍ଚ ଉରସେ
ଯବନିକା ଟାଣି ଦେଇ
ନାଟ୍ୟ-ରସିକ          ରାମଶଙ୍କର
ଶୋଇ ଛ ପଡ଼ିଛି ଏଇ ।

ଚନ୍ଦ୍ରପୂଜାଶ୍ରୀ          ମୃତ୍ୟୁଞ୍ଜୟ
ରତ୍ନ ଖୋଜୁଛ ସୁଖେ
ସବଗ ନନ୍ଦନେ          ଥରେ ଥରେ ଗୁହିଁ
ନରକ ପାହାଡ଼ ମୁଖେ ।

ପଲ୍ଲୀ-ବନ୍ଧେର          ନନ୍ଦକଶୋର
ଛାଡ଼ କୁଶୁପୁର ମାୟା
କାଠଯୋଡ଼ୀ ନଦୀ          ସିକତା ପୁଳନେ
ଅର୍ପିଛ ତୋର କାୟା ।

ପ୍ରଗଢ ପଥର ତରୁଣ ପଥିକ
ପ୍ରବୀଣ ବିଶ୍ୱନାଥ
ଉତ୍କଳ ଭାଷା ଭାରତୀର ଆଶେ
କରିଚି ଜୀବନ ପାତ ।

ମାତୃଭାଷାର ଗୌରବ ଗାଥା
କଥାକବି ପ୍ରହ୍ଲାଦ,
ତୋର ବୁକେ ବସି ଜୀବନର ପଥେ
ଆତୁରେ ଗୁହାଁରି ଆଜ ।

ଏତେ ଏତେ କବି କୋବିଦର ପୂଣ୍ୟ
ବନ୍ଧୁ ଅଛୁ ତୋର ପଥେ
କିପରି କହିବି ସହିଚଉଁରା କି
ଶମଶାନ ବୋଲି ଚତେ ।

୩

ଲୁଷ ତୋହର ବକ୍ଷ ବିଡାରେ
ସଞ୍ଚିତ ବହୁ ଧନ,
ଲକ୍ଷ ସପନ, ଲକ୍ଷ ମନନ,
ଅସୁତ ମହତ ମନ ।

ଆଖିର ଉହାଡ଼େ ସୁପ୍ତ ବହୁତ
ଆତ୍ମା ଉଠୁଚି ଝଳି
ଦିବସ ଗଗନେ ଗୁପ୍ତ ଯେସନେ
ଦୀପ୍ତ ତାରକାବଳି ।

ମୋ ମନରେ ଦିଅ     ସଷ୍ଟାଚଜରୀ ଲୋ
ସେଇ ଅମୃତ ଭାବ
ମୃତ୍ୟୁରେ ଜଟି     ଜୀବନରେ ମୁହିଁ
ଜୀବନ କରିବ ଲଭ ।

---

# ଧୂଳିଆ ବାବା

୧

ଧୂଳିଆ ବାବା ରେ ଧୂଳିଆ ବାବା
ବଦନରେ ତୋର ଉଜଳ ଆଭା ।

ଦିଗମ୍ବର ତୁ ବାଇଆ ବେଶ
ଦେହରେ ଧୂଳିର ବିଭୂତି ବୋଳା ।

ଗ୍ରାମ-ଦାଣ୍ଡରେ ଧୂଳିରେ ବସି
ଧୂଳି-ଖେଳରେ ତୁ ଯାଇଛ ରସି ।

ଗଢ଼ି ଦେଉଛୁ ତୋ ଧୂଳିର ପୁର
ଧୂଳି-ଉଦ୍ୟାନ ଧୂଳିର ଫୁଲ ।

ବୁଣୁଛୁ ତୋହର ଧୂଳିର ଧାନ
ବାଢ଼ୁଛୁ ଧୂଳିର ଅନ୍ନ-ପାନ ।

ଧୂଳିଠାରୁ ଭଲ ପାଉଛୁ କିସ ?
ଧୂଳିରେ ଭୁଲୁଛୁ ଅହର୍ନିଶ ।

୨

ପଙ୍କେ ପଦୁଅଁ-ଫୁଲ-କଳରେ
ଧୂଳିଆ ବାବା ତୁ ଲୋଟୁ ଧୂଳିରେ ।

ଛୁଦ୍ର ତୋହର ଗୋରା ବଦନ
ଦିଶଇ କେଉଁକ ତୋର ଶୋଭନ ।

ଗୋଲାପ ବରଣ ଲଳିତ ଓଠେ
ଅଳପ ହସର ଲହରୀ ଲୋଟେ ।

ସୁନୀଳ ମେଦୁର ଯୁଗଳ ଆଖି
ଗୁପତ ହୃଦର ନୀରବ ସାକ୍ଷୀ ।

ବାହାରେ ଦିଶୁଚୁ କେଡ଼େ ସୁନ୍ଦର
ଭିତର ନିଷ୍ଠେ ଘେନ ନିର୍ମଳ ।

ନୋହିଲେ କପଟ ଧୂଳିରେ ଗଡ଼ି
ଦିଶୁଥାନ୍ତୁ ତୋର ପଦୁଅଁ କଢ଼ି ।

୩

ଧୂଳିଆ ବାବା ରେ ଧୂଳିଆ ବାବା
ଜୀବନରେ ତୋର ଅମର ଆଭା ।

ଅନ୍ତରେ ତୋର ଆସିବ ଦେଜ
ଏଇ ଧୂଳି ହେବ ସମାଧି-ଶେଯ ।

ଏଇ ଦେହ ତୋର ସମାଧି-ବନ
ଧୂଳି ତୁଲେ ମିଶି ହୋଇବ ଲୀନ ।

ତେଣୁ ସିନା ତୋର ଧୂଳିରେ ପ୍ରୀତି
ଧୂଳିଆ ଧୂସର ହେଉଚ୍ ନିତି ।
ତେଣୁ ସିନା ତୁହ୍ମ ଚରଣ ଭରି
ଧୂଳି-ପୂଜା କରୁ ଭକତ ପରି ।
ଧୂଳିରେ ଲୋଟୁଚୁ ନିର୍ବିକାର
ଧୂଳିକି ମଣୁଚୁ ସତ୍ୟ ସାର ।

୪

ଧୂଳିଆ ବାବା ରେ ପ୍ରବୀଣ ତୁ ତ
ନୋହୁ ଅଜ୍ଞାନ ନୋହୁ ବାତୁଳ ।
ସୁକୁମାର ତୋର ବାତୁଳ ପ୍ରାଣେ
ସୁପତ କ ଜ୍ଞାନ ଜାଣେ ମୁଁ ଜାଣେ ।
ଭବ ମାନବର ଜୀବନ-ଧାରା
ଭରି ରହି ଅଛି ତୋ ବୁକୁ ସାରା ।
ଶିଶୁ ହୋଇ ତୁ ତ ଜଗତ ଗୁରୁ
ଜି-କଥା କହୁ ଧୂଳିର ପୁରୁଁ ।
ହୃଦର ଅଜଣା ଗୁପତ ଜ୍ଞାନ
ଦେବେଟି ଭାଷାରେ କରୁଚୁ ଗାନ ।
"ସାରା ବିଶ୍ୱର ଧୂଳିରେ ଲୟ
ଧୂଳିର ଜୟ ରେ ଧୂଳିର ଜୟ ।"

---

# ମୃତ୍ୟୁ ଓ ଗୁଣିଆ

ଛଅ ଦିନ ହେଲା କଟକ ସହରେ
ଲାଗିଅଛି ମହାମାରୀ
ଦିନଟିଏ ଗଲେ ଯୁଗ ମଣୁଅଛି
ଶଙ୍କିତ ନରନାରୀ ।

ଯାର ଘରେ ଅଛି ଧନ ଦଉଲତ
ଯାର ଅଛି ଧନ-ବଳ
ତାହାର ଦୁଆରେ ଦେଖା ଦେଉଅଛି
କବିରାଜ, ଡାକତର ।

ମୃତ୍ୟୁର ଲୀଳା ସାଇରେ ସାଇରେ
ବଢ଼ୁଅଛି ଦିନ ରାତି
ଭରି ଉଠୁଅଛି ସତିଚଉରାର
ଖାନ୍‌ନଗରର ସ୍ମୃତି ।

ଭୟେ ଭୟେ ପ୍ରତି- ପଦ ବିକ୍ଷେପେ
ଚମକଇ ପଥଚାରୀ
ଛଅ ଦିନ ହେଲା କଟକ ସହରେ
ଲାଗିଅଛି ମହାମାରୀ ।

କୈଶୋରିକା

୩୨

ଚଉଦ ବରଷ          ବୟସ ତାହାର
ନୟନେ ଉଜଳ ଆଶା
କଣ୍ଠେ କୋମଳ          ସହାନୁଭୂତିର
ସମବେଦନାର ଭାଷା ।

ସ୍ୱେଚ୍ଛା ସେବକ          ଦଳଟିଏ ଗଢ଼ି
ବୁଲି ବୁଲି ଘରେ ଘରେ
ଅଉଷଧି ପଥ୍ୟ          ବତରଇ ଆଜ
ସେବା-କଲ୍ୟାଣ କରେ ।

କିଏ ସେ ବାଳକ          ପୀଡ଼ିତ ପ୍ରାଣର
ବୁଝୁଅଛି ଅବଶୋଷ
ଏଇ କଷ୍ଟକର          ଛୁଆଟିଏ ସେ
ଦରଦୀ ସୁଭାଷ ବୋଷ ।

ମୁର୍ଦ୍ଦାର ଦେହ          ଦୁଇ ଦୁଇ ଥର
ସ୍ମଶାନଘାଟକୁ ଯାଇ
କ୍ଳାନ୍ତ ସୁଭାଷ—          ଦଳ ଫେରୁଅଛି
ଦୁସ୍ତର ପଥ ବାହି ।

ଅନ୍ତରାଳରୁ          କହଇ କିଏ ସେ
"ହୁସିଆର, ହୁସିଆର,
କାଲି ଦେଖି ନେବ          ତୁମେ କର ଜାଣ
କେତେ ପର ଉପକାର ।

ଜାଣୁ ଜାଣୁ ତୁମେ        ମୋହର ଦାନାରେ
ଭର ଦେଉଅଛ ଧୂଳି,
କାଲି ଦେଖି ନେବ        କି ସେବା କରିବ
ଘର ଘର କେତେ ବୁଲି ।"

ଶରତ କହଇ,        "କିଏ ଏ କେଳକଥା
ଜାଣିଅଛ କରେ ଭାଇ,
ମନ୍ତ୍ର ତନ୍ତ୍ର        କରି ଏ ଗୁଣିଆ
ଘୂରୁଅଛୁ ଯାଇ ଯାଇ ।"

ସୁଭାଷ ବୋଲଇ,        "ଆମେ ତ ଲାଗିଛୁ
ପୀଡ଼ିତ ମଣିଷ ପାଇଁ,
ବିପଦକୁ ଆମେ        ଖାତିର କରୁ ନା
ଶଙ୍କା ଆମର ନାହିଁ ।"

ତହିଁ ଆର ଦିନ        ଗୁଣିଆର ଘରେ
ଠାକୁରାଣୀ ଦେଲେ ଦେଖା
ଗୁଣିଆ ତ ଘରେ        ନାହିଁ, ଗୁଣିଆଣୀ
ପଡ଼ି ରହିଅଛି ଏକା ।

ପାଖରେ ସୁଭାଷ        ସାଦରେ ବସିତ
କରୁଛି ରୋଗୀର ସେବା
ଯଦୁନାଥ ଧାଇଁ        ଦଉଡ଼ କରୁଛି
ଔଷଧ ଆଣି ଦେବା ।

୫.୪

ଦିନ ଅବସାନେ    ଗୋଧୂଳି ବେଳାରେ
ଗୃଣିଆ ଦେଖିଲା ଆସି
ଶତ୍ରୁ ଯାହାକୁ    ଭାବୁ ଥିଲା କାଲି
ସେଇ ତ ସ୍ନେହର ରାଶି ।

କାତର ହୋଇ ସେ    କାନ୍ଦିଲା, "ଭାଇ,
କ୍ଷମା ମୋତେ ଦିଅ ଆଗେ
ମୂର୍ଖ ଅବୋଧ    ଯାହା ଯାହା କାଲି
କହି ଦେଲି ମୁହିଁ ରାଗେ ।

ବାଡ଼ ଠାକୁରାଣୀ    ପୂଜା ଦେଇ ମୁହିଁ
ଯ' କଣ୍ଢ଼ କମାଉ ଥିଲି,
କାଲି ଭାବୁଥିଲି    ବାଧା ଦେଉଅଛ
ତୁମେମାନେ ସବୁ ମିଳି ।

କାଲି ସେଇଲାଗି    ତୁମର ପଥରେ
ରୋଷରେ ମୁଁ ଥିଲି ଶାସି
ଦେବଦୂତ ତୁମେ    ଜୀବନ ଦେଉଚ
ମୋହର ଘରକୁ ଆସି ।

କାଲି ହୋଇଥିଲି    ଶତ୍ରୁ ତୁମର
ମିତ୍ର ହେଲି ମୁଁ ଆଜ,
ନୟନ ଖୋଲି ମୁଁ    ଦେଖୁ ଅଛୁ ଭାଇ
ଜୀବନ-ଚିତ୍ର-ରାଜ ।'

"ମଣିଷ ଆମେ ରେ", ସୁଭାଷ କହଇ
"ଲାଗିଚୁ ମଣିଷ ପାଇଁ
ଜଗତେ ଯେ କରେ ମଣିଷର ସେବା
ଶତ୍ରୁ ତାହାର ନାହିଁ ।"

"ଜାଣୁଅଛୁ ମୁହିଁ," ଗୁଣିଆ ବୋଲଇ
"ଘୂରୁଚ ଗହନ ବନେ
ଭୁମର ଦଳରେ ମଣିଷ ଦଳରେ
ମତେ କର ନଅ ଜଣେ ।"

---

## ଶରତ-ନଈ-କୂଳେ

୧

ଶରତ ନଈ କୂଳେ
ବସିଛି ମୁହିଁ ଘୁଇ-ଛଇଳ
ଆମ୍ର-ତରୁ-ମୂଳେ ।

ପ୍ରକୃତିର ସବୁଜ କୋଳ —
ଏ ମୋର ମନ ହେଉଛି ଖେଳ,

ନୟନ ମମ
ଭ୍ରମର ସମ
ମାଧୁରୀ ଖୋଜି ବୁଲେ ।

୨

ନଈର ଜଳ ଧାର
ଝଲଛି ଗୁହ-ଆଲୁଅ ତଳେ
ଦିଶୁଛି ମନ-ହାର ।

ହଲଇ ଗଛ ପତର ରାଶି
ସମୀର ଧୀରେ ପଡ଼ୁଛି ଝାସି

ଗୋଟିକ ଗୋଟି
ପଡ଼ୁଛି ଲେଟି
ଚପଳ ଢେଉ-ମାଳା ।

୩

ଘୁଅର ଏକ ପାଶେ
ମଉନ ବକ ବସିଛି ଚାର
ଶିକାର ଅଭିଳାଷେ ।

ପାଉଛି ଯାହା ଅତୁଳ ସୁଖେ
ଦେଉଛି ଭରି ଆପଣା ମୁଖେ ।

ଗେଣ୍ଡାକିଆ
ଝାମ୍ପ ମାରି
ଉଠଇ ନୀଳାକାଶେ ।

୪

ପାଖରେ ଏଇ ପଠା
କାହିଁ ଯୌବନ ଦଶୁଚ ଚହିଁ
ସତେ କି ଧଳା ଜଠା ।

ତାହାର ପାଶେ ଚକୋଲ୍ଲ ଭୁଲେ
ଉଷତ ହୋଇ ଚକୁଆ ବୁଲେ ।

ଉଦାଳଆଟି
କେର କାଟି
ଦେଖାଏ ରୂପଛଟା ।

୫

ନଈର ଆର ପାରେ
ଦଶୁଚ ଗାଈ ବାଛୁରି ପଲ
ସବୁଜ ପଡ଼ିଆରେ ।

ଗୋପାଳ ପୁଅ ସେଇଠି କାହିଁ
ବଇଁଶୀ ସୁରେ ଦେଉଚ ଗାଇ

ମୂର୍ଚ୍ଛନାଟି
ଉଠୁଚ ମାତି
ସତେ କି ତାଳେ ତାଳେ ।

୬

ନଈର ଏଇ କୂଳେ
ଶେଫାଳି ଫୁଲ ଆକୁଳ କରି
ଫୁଟିଛି ଯାଇ ଦୂରେ ।

ମଧୁର ତାର ମଦକ ରାଶି
ପବନ ସାଥେ ଆସୁଛି ଭାସି ।

ଆବେଶ-ଭୋଳ
ଚିତ୍ତ ମୋର
ତାହାରି ସାଥେ ଘୂରେ ।

୭

ସେତକ ବେଳେ ତହିଁ
ଶଙ୍ଖଚିଲ ଉଠଇ ଡାକି
ଆକାଶେ ରହି ରହି ।

ଦୂରେ ଯେ ଥିଲେ ବାଳକଦଳ
ଉଚ୍ଚେ ମିଳି ତୋଳିଲେ ଧ୍ୱନି

"ହେଇ ରେ ଭାଇ
ବଜ୍ରଚୂ-ଶିଷ୍ଟ
ଦେଖ ରେ ଦେଖ ଭାଇ ।"

୮

ଶରତ ଲଗନରେ
ସୁନୀଳ ଏକ ବଉଦ ଉଡ଼େ
ଧୂସର ଗଗନରେ ।

ଉପରେ ମେଘ ଚଳେ ଏ ନଈ
ମନରେ ମୋର ଦଏଇ କହି,

"ସୃଷ୍ଟିଧାମେ
ସୁଷମା ଆମେ
ଭରୁଚୁ ଜୀବନରେ ।"

# ଛଅପୋଣ୍ଡ

୧

ମଣି ମାଣିକରେ ପୁର ହସେ
ଧନ ଦଉଲତ ଅସୁମାର,
କୁବେର ସମାନ ସାଧବ ସେ
ତନସ୍ତୁବନ୍ତ ନାମ ତାର ।

ସାଧବର ଥିଲେ ସାତ ପୁଅ
ଏକହୁଁ ଆରେକ ବୁଦ୍ଧିଆଳ,
ସାତ ବୋଇତରେ ମାଲ ଭରି
. ସାତ ଦରିଆରେ ଉଡ଼େ ପାଲ ।

ସାତ ପୁଅରେ ସେ ଝିଅଟିଏ
ବଡ଼ ଅଲିଅଳ ଛଅପୋଣ୍ଡ,
ବେଳ ତାର ବାନ୍ଧି ନେଉଥିଲା
ଲନ୍ଧୁ ସପନରେ ଖେଳ ହୋଇ ।

ସାଧବ କହଇ, "ଆଲୋ ମାଆ
କେଉଁ ଦରବରେ ତୋର ମନ ?"
ସାଧବାଣୀ କହେ, "ହରଢ଼ ,
ଥାଆ ମୋ କୋଳରେ ଆଲୋ ଧନ ।"

ସାତ ଭାଇର ସେ ସ୍ନେହଗଣ୍ଠି
ଲୁଟି ନେଇଥିଲା ଦିନ ରାତି,
ସାତ ଭାଉଜର ସେବା-ସୁଖେ
ପୂରି ଉଠୁଥିଲା ତାର ପ୍ରୀତ ।

୨

ସାଥି ସହଚରୀ ମେଳରେ ସେ
ଦିନକର ବସି ଅଗଣାରେ,
ଧୂଳିଘର କରି ଖେଳୁଥିଲା
ଉଷତରେ ମନ ଫୁଲଣାରେ ।

ବ୍ରାହ୍ମଣୀ ବୁଢ଼ୀ ଭିକାରୁଣୀ
ଝିଅଟି ପର୍ବରେ ଦେଖି ତାହା,
"ସୁନାର କୁଳେଇ ତୋର କାନ୍ଧେ
କାନ୍ଧେରେ ଖେଳୁଛୁ ଆଲୋ ମାଆ ?

ତୋହର ପରି ମୁଁ ହୋଇଥିଲେ
ସାଧବ-ଦୁଲଣୀ ହୋଇ ଯାଇ
ସୁନାର ବୃନ୍ଦ ମନମତ
ଗଢ଼ାଇ ଥାନ୍ତି ନିଜ ପାଇଁ !"

ସେଇ କଥା ଯେନ ଚଅପୋଛି
ବେଳ ଥାଉଁ ଥାଉଁ ଖେଳ ଛାଡ଼ି,
ଭିତରୁ କବାଟ କିଳି ଦେଇ
ଭିତରେ ଶୋଇଲା ମୁହଁ ମାଡ଼ି ।

ଖାଇଲା ବେଳକୁ ଖୋଜା ହେଲା
'ଚଅଟପାଣ୍ଡ କାହିଁ ଚଅପୋଣ୍ଡ,'
କ୍ଷଣକ ଭିତରେ ଜଣାଗଲା
ଗମ୍ଭୀର ଘରେ ଅଛି ଶୋଇ ।

ସାଧବ ଡାକଇ, "ଆଲୋ ମାଆ
କବାଟ କାହିଁକି ଅଛୁ କଳି ?
ଏଡ଼େ ସୋହାଗରେ ଥାଉ ଥାଉ
ଭିଣା ହେଲା ତୋର କେଉଁ ଶିଖି ?

ହଜ ଯାଇଥିଲେ ଖୋଜ ଦେବୁ
ଭଙ୍ଗ ଯାଇଥିଲେ ଦେବୁ ଗଢ଼ି,
ରୁଷ୍ଟରୁ ମାଆ ଲୋ କାହିଁ ପାଇଁ
କହ କହ ମତେ ଖୋଲି କରି ।"

କାନରେ ଶୁଣି ସେ ସବୁ କଥା
ଚଙ୍କିଲା ନାହିଁ ଚଅପୋଣ୍ଡ,
ମାଆ ଉପରେ ପୁଣି ସାତ ଭାଇ
ବୁଝାଇଲେ ଜଣ ଜଣ ହୋଇ ।

କାହା କଥା ସହୁଁ ନ ଘିନନ୍ତି
ସାଧବାଣୀ କସ ଭାବ ଚହୁଁ,
ବଡ଼ ଆଦରରେ ଡାକ ଦେଲା
"କୁଆଡ଼େ ଗଲୁ ଲୋ ସାନବହୂ ?

ପାଣି ଫାଟିଗଲୁ ଆମେ ପିବା
ଆଲୋ ମାଳେଢ, ଭୁଜ ସାଆ,
ଚୋଅର ତାଡାର ମନ ମିଶେ
ଶୁଣିବ, କହିବୁ ଭୁଜ ସାହା ।"

ସାନବହୂ ତହୁଁ ତାଙ୍କ କହେ
"ତଅପୋଷ କଥାଁ ଶୁଣୁନାହଁ ?
ଅପୂରୁବ ଭଲ କୋଉ ଚଜ ?
କହିଦଅ ତୁମେ କସ ଚୂହଁ ?"

କବାଟ ଫିଟାଇ ତଡ଼ବଡ଼
ଗେଲେଇ ଗେଲେଇ କହେ ଝିଅ,
"ସୁନାର ଚୂନ୍ଦ ଚୂହେଁ ମୁହିଁ
ଦିଅ ନୂଆବହୂ ଆଣି ଦିଅ ।"

"ଏଇ କଥା, ଏଇ ଖୁର କଥା,"
ସାଧବ କହଇ, "ଆଲୋ ମାଆ
ପନ୍ଦର ଦିନ ଦେଏ ମତେ
ଗଢ଼ାଇ ଦେବ ଲୋ ଚୂହୁଁ ଯାହା ।"

ବହୁତ କଉଡ଼ି ପାଣି କରି
ଭଲ ବିନ୍ଧାଣୀ ଘରେ ଆଣି
ସୁନାର ଚୂନ୍ଦ ଗଢ଼ାଇଲେ
ଉଷତେ ସାଧବ ସାଧବାଣୀ ।

କେଜାଣି କଅଣ ହେଲା ତହିଁ
ଅଧା ଗୃହରେ ବାପ ମଲା,
ଦେଖୁ ଦେଖୁ ପୁଣି କେଇ ଦିନେ
ପୂରା ଗୃହରେ ମାଆ ଗଲା ।

ପଥର ପଡ଼ିଲା ମଥା ପରେ
"ଇମିତ କରମ ହୁଏ କାର ?"
କୁରଙ୍ଗ ପରିଏ ଝୁରି ହେଲେ
ସାଧବର ସାରା ପରିବାର ।

ବାପକୁ ମାଆକୁ ଝୁରି ଝୁରି
ଲୁହ ଗଡ଼ାଇଲା ତଅପୋଇ,
ଭାଇଏ ଭାଉଜେ ବୁଝାଇଲେ
"ଆମେ ପରା ଅଛୁ ତୋହ ପାଇଁ ।"

୩

ବୋଇତ ମେଲାଇ ପାରିବାରେ
ବଣିଜକୁ ଗଲେ ସାତ ଭାଇ,
ଭାଉଜ ମେଳରେ ହସି ଖେଳି
କାଳ କଟାଇଲା ତଅପୋଇ ।

ବୁଢ଼ୀ ବ୍ରାହ୍ମଣୀ ଭିକାରୁଣୀ
ଆସି ଦେଖା ଦେଲା ଦିନକର,
ଦୋଳ ଖେଳୁ ଥିଲା ତଅପୋଇ
ଘେରି ରହିଥିଲେ ସାଥିଦଳ ।

"କଅଣ କରୁଚ ସାତ ଯାଆ !"
ବ୍ରାହ୍ମଣୀ କହେ ହସି ହସି,
"ଭଲ୍ ନଣନ୍ଦ ତୁମର ଏ
ଜାରି କରୁଅଛୁ ବସି ବସି !

ଜାଣୁ ଜାଣୁ ତୁମେ ଦୁଧ ଦେଇ
ପୋଷି ଅଛ ଏକ ବିଷଧର,
ମିଛରେ ଫାନ୍ଦ ବଖାଣିବ
ସାତ ଭାଇ ଆଗେ ସବୁ ଖଳ ।

ରାଜନ ପୁଅର ମୁଁ ହୋଇଥିଲେ
ରଖିଥାନ୍ତି ମୁଁ କୋଉମିତ ?
ଛେଳି ଚରାଇବା ପାଇଁ ପୁଅକୁ
ପଠାଉ ଥାନ୍ତି ନିତ ନିତ ।"

ବଡ଼ ବହୂ ଭରି ହରଷରେ
ବଧାଇ ଦେଲ୍ ଯେ କସ ଧନ
ବ୍ରାହ୍ମଣୀ ଗଲ୍ ନିଜ ପଥେ
ହସ ହରଷରେ ଭରି ମନ ।

ତହିଁ ଆର ଦିନ ବଡ଼ ବହୂ
ଶୁଣାଇଲ୍ ଏ କ କଥା ଆହା !
"ତଅପୋଇ ଆଲୋ ତଅପୋଇ,
ଛେଳି ନେଇ ଏବେ ବନେ ଯାଆ ।"

ଆଜି ଯାଆମାନେ ସେଇ ଭଳି
ଦେଖାଇଲେ ସେଇ ନିଠୁରତା
ସାନ ମା'ଳନ୍ଦୀ ଶୁଣାଇଲା
"ହାୟ ହାୟ ଭଲ୍ ଏ କ କଥା ?"

"ଆଜି ଦୟାବନ୍ତ ଆଜି ଦୟା,
ସମାଜ ନଜର କଥା ଏବେ,
କହୁଅଛୁ ଆମେ ଯେଉଁ କଥା
ଟଳିବ ନାହିଁଟି ତାହା କେବେ ।"

ତଅପୋଷ୍ଣ ଘେନ ଛେଳପଲ
ବନକୁ ଚଳିଲା ମନ-ଦୁଃଖେ,
ବୁକୁର ବେଦନା ଘଡ଼ି ଘଡ଼ି
ସଞ୍ଚିତ ହେଲା ତାର ବୁକେ ।

ଭାତ-ଗୁଣ୍ଡୁଡ଼ା ଦେଇ ଥିଲା
ଗଲାବେଳେ ତାର ବଡ଼ ବହୂ,
ଖାଇବାକୁ ଯେବେ ଫିଟାଇଲା
ଶୁଖିଗଲା ତାର ଗୁଣ୍ଡ-ଲହୁ ।

ପତର ଉଠାଇ ଦେଲା ଯେବେ
ଉପରେ ଦେଖିଲା ମୁଠେ ଭାତ,
ତଳକୁ ତଳକୁ ମୂଷା ମାଟି
କମ୍ପି ଉଠିଲା ତାର ହାତ ।

ପ୍ରତିଦିନ ସେଇ ଆଚରଣ
ପ୍ରତିଦିନ ହେଲ୍ ସେହିପରି
ଅନ୍ନ ବିହୁନେ ଛଅପୋଷ୍କ
ବଞ୍ଚି ରହିଲ୍ ମରି ମରି ।

ମାଳେନ୍ଦୀ ତାର ସାନ ବନ୍ଧୁ
ଚାଳ ଚଢ଼େ ତାର ଯେଉଁ ଦିନ
ମନ ଆନନ୍ଦେ ଛଅପୋଷ୍କ
ପେଟ ପୂରି ଖାଏ ସେଇ ଦିନ ।

ହାୟ ରେ ଦଇବ ଏ କି କଥା
ଜୀବନରେ ଏ କି ଆତଯାତ ?
ରାଜଟିଗ୍ର ଯିଏ ପାଉଥିଲ୍ ।
ଆଜି ସେ ପାଉନି ମୁଠେ ଭାତ !

୪

ସେଦିନ ସଞ୍ଜେ ଛଅପୋଷ୍ଣ
ଫେରିଲ୍ ଯେବେ ଛେଳପଲ୍,
ବଡ଼ବନ୍ଧୁ କହେ ପାଟି କରି
“ଆଲେ, ଧରମଣି କାହିଁ ମୋର ?

ଦୋଳ ଖେଳିବାରେ ମନ ଅଛୁ
ଛେଳି ଆଡ଼େ ମନ ଯିବ କିଆଁ ?
ଧରମଣୀକି ମୋ ଖୋଜି ଆଣ୍
ନୋହିଲେ ଗାଲ୍‌ରେ ଦେବି ଚିଆଁ ।”

ଥଢ଼ତ ମାରୁତ ଚଲ୍ ଚଲ୍
ମେଘ ଗରଜୁଚି ଘଡ଼ ଘଡ଼,
ଘରମଣି ଲାଗି ଥଅପୋଈ
ବାହାର ହୋଇଲା ଥଡ଼ବଡ଼ ।

ପାଦ ସଞ୍ଚାଳି ଭୟେ ଭୟେ
ବହୁତ ଖୋଜିଲା ବନେ ବନେ,
ଘରମଣି ଯନ୍ତୁଁ ନ ମିଳିଲା
କେତେ କି ଭାବିଲା ମନେ ମନେ ।

ବୃଶାଳ ସେ ଏକ ତରୁତଳେ
ବସିଲା ନଦକ ଥୁନ୍ତ କରି,
ବାହୁନ ବାହୁନ ଥଅପୋଈ
କାନ୍ଦିଲା ଖାଲି ସ୍ୱାହା ଧରି ।

କାତର କାନ୍ଦ ଶୁଣି ଶୁଣି
ଥବଦ ହୋଇଲେ ତରୁ ଲତା,
ବନ ପରେ, ବନଭୂଇଁ ପରେ
ଭରି ଗଲା ଖାଲି ଆକୁଳତା ।

ନିଦ ହୋଇଗଲା କେତେବେଳେ
ଥଅପୋଈ ଜାଣି ପାରିଲା ନି,
ଆଖି ଖୋଲୁଁ ଦେଖେ ନଶି ଶେଷ
ଦିନମଣି ଉଇଁ ସାରିଲାଣି ।

କୁଆଡ଼େ ଫେରିବ ? ସିଧା କାହିଁ ?
ଫେରିବ ସେ କଅଁ ଘର-ମୁହେଁ ?
ବାହୁନି ବାହୁନି ଆତୁର ସେ
ବୁଡ଼ିଲା କାତର ଆଖି-ଲୁହେ ।

ପାଦ ପାତ କାର କାନେ ଶୁଣି
ଗୃହିଁ ଦେଲା ଯେବେ ତଅପୋଣ୍ଡ
ଦେଖିଲା କିଏ ତା ସାମନାରେ
ମଉନେ ରହିଛି ଉଣ୍ଡ ହୋଇ ।

କେଜାଣି କଅଣ ଜଣା ଗଲା
ଏକ ଆନେ ହେଲେ ଗୃହିଁାଗୃହିଁ,
ଭଉଣୀ କହିଲା, "ସାନ ନନା,"
ଭାଇ ବି କହିଲା, "ତଅପୋଣ୍ଡ ।"

ଉଦବେଗଭରେ ଭାଇ ତହୁଁ
ଭଉଣୀକି ନେଲା ବୁକେ ତୋଳି,
ଲୋତକରେ ଖାଲି ଝୁରି ହେଲା
ତଅପୋଣ୍ଡ ତଅପୋଣ୍ଡ ବୋଲି ।

"ଇମିତ କାହିଁକି ହେଇଚୁ ଲୋ ?
ଖୋଲି କରି ମତେ ସବୁ କହ ।"
ବ୍ୟଥାର ଗାଥାଣୀ ତଅପୋଣ୍ଡ
ଗାଇଗଲା—ବଡ଼ ଦୁରୁବହ ।

ଭାଇ କାହାର ଲୁହ ଢାଳ
ଭଉଣୀ ଝୁରନ୍ତି ଲୁହଜଳେ,
ଭାଇ ଭଉଣୀକ ସାଥେ ଧର
ବୋଇତ ପାଖକୁ ଗଲ୍ ଖରେ ।

ଭାଇଏ ଯୋଉଠି ବସି ଥିଲେ
ଲୋଟି ଗଲ୍ ଯାଇ ତଅପୋଈ,
ଭାଇଏ ଦେଖିଲେ କଅଣ ଏ
ପଥର ପଣ୍ଟଏ ଜଡ଼ ହୋଇ ।

ସାନ ଭାଇ ସବୁ କହି ଗଲ୍
ଶୁଣି ଗଲେ ଆଉ ଛଅ ଭାଇ,
ମଥାଟି ଆଉଁଷି ଭଉଣୀର
ଆଖିରୁ ଲୋତକ ଦେଲେ ବାହି ।

ବଡ଼ ଭାଇ କହେ, "କି ଦେଖିବ ?
ତୋହ ରୂପ ଅଛି ଯାହା ହୋଇ,
ସ୍ନାହାନ ବଢ଼ାଇ ବେଗେ ବେଗେ
ସଜ ହଅ ଆଲୋ ତଅପୋଈ ।"

ବେଶ ଭୂଷଣରେ ଫଳକରେ
ପୁଲକ ଉଠିଲ୍ ପଣ୍ଟ ଭଳ,
ଫଗୁଣ ଆସିଲେ ଧରଣୀରେ
ପ୍ରକୃତି-ରୂପ ଉଠେ ଝଳ ।

୫

ଶଙ୍ଖ, ବାଇଦ, ହୁଳହୁଳି
ଉଚ୍ଛୁଳି ପଡ଼ିଲା ବେଳା ଘାଟେ,
ମିଳି ଗଲେ ଯାଇ ସାତବହୂ
ଫୁଲ ବରଷାଇ ଚଲା ବାଟେ ।

ବଡ଼ ଭାଇ ବେଗେ ପଚ୍ଛରଇ,
"ତଅପୋଈ କାହିଁ ତଅପୋଈ ?"
ଏକ ଆନ ମୁଖେ ଅନାଇଲେ
ସାତବହୂ ଖାଲି ଥକା ହୋଇ ।

ବଡ଼ବହୂ କହେ ମୁହଁ ଖୋଲି
"ତଅପୋଈକି ତ ଘାଟ ଜଗ ।"
ନଅାଁ ଗିଲା ତାର ସାହସକୁ
ଦେଖୁଥିଲେ ଚହିଁ ସାଆନ୍ତଳ ।

"ଉତ୍ତର କରୁଚ ଆଜ କଅାଁ ?"
ଆକୁଳେ କହଇ ବଡ଼ ଭାଇ,
"ବୋଇତ-ବନ୍ଦା ସାର ଦେଲେ
ଦେଖିବା ତାହାକୁ ଘରେ ଯାଇ ।"

ଶଙ୍ଖ, ବାଇଦ, ହୁଳହୁଳି
ଉଚ୍ଛୁଳି ପଡ଼ିଲା ଏକ ସ୍ୱରେ,
ଚ୍ଛଲିଲେ ବୋଇତ ଭିତରକୁ
ଧୂପ ଦୀପ ଘେନି କୁଟୁମ୍ବଲେ ।

ବନ୍ଧାଣ-ଥାନେ କଏ ସେ ଲୋ
"ଚଅପୋଣ୍ଠ ସେ ତ ଚଅପୋଣ୍ଠ !"
ଏକ ଆରେକର ମୁଖେ ଖାଲି
ଅନାଇ ରହିଲେ ଥକା ହୋଇ ।

ଉଦବେଗଭରେ ଚଅପୋଣ୍ଠ
ଥର ଥର ଦେହେ ଉଠି ଚହୁଁ
ଭିଡ଼ ପକାଇଲା ଭୁଜ-ପାଶେ
"ଦେଖି ତୁମେ ମୋର ସାନ ବନ୍ଧୁ ।"

ଚକିତ ଥକିତ ଗୃହିଣୀରେ
ଅନାଇ ଅନାଇ ବନ୍ଧୁମାନେ
ମଲା ପରି ଉଭା ରହିଗଲେ
ସେଇଠାରେ ଲାଜ ଅପମାନେ ।

ସାତ ଭାଇ ଯାଇ ସେଇଠାରେ
ମିଳିଗଲେ ରାଗେ ଜର ଜର
ବଡ଼ ଭାଇ କହେ, "ବଡ଼ ବନ୍ଧୁ,
ଚଅପୋଣ୍ଠକ ତ ଭାରି ଜର ।

ତୁମ ପାଇଁ ଆଜ ମୋର ଘରେ
ଠାବ ନାହିଁ, ଏହା ଜାଣି ଥାଅ,
ସାନବନ୍ଧୁ ଛଡ଼ା ଆଉ ଯେତେ
ଏଇଠାରୁ ଏବେ ଚାଲିଯାଅ ।"

ଅଂଶିଏ ଆଖିଏ ଲୁହ ଧରି
ଛଅପୋଈ ଚହୁଁ କହେ ଅଳି,
"ବଞ୍ଚିତ ମୁହିଁ ନନା ମୋର,
କ୍ଷମା କର୍ ସବୁ ଦୟା କରି ।

କାହାର କୃତ ଏ ନୁହଇ ତ
ଲେଖା ଥିଲା ଏ ମୋ କରମରେ,
ଦୟା ବନ୍ଧୁ ସବୁ କ୍ଷମା କର
କାହିଁକି ପଡ଼ୁଛ ଭରମରେ ?

ଫେରିଯିବା ଭୁଲ ଫେରିଯିବା,
ସଭିଏଁ ଫେରିବା ଆମ ଘରେ,
ଆଗ ପରି ପୁଣି ଦିନ ନେବା
ସେଇ ସୁଖ ଶିଶୁ ସୋହାଗରେ ।"

ଆଚମ୍ବିତ ହେଲେ ସାତ ଭାଇ
ସବୁ କାଳି ଗଲା ଧୋଇ ହୋଇ,
ସବୁରି ମୁଖରେ ହସ ଭାଷ
"ଧନ୍ୟ ଆମରି ଛଅପୋଈ ।"

# ନବଉତ୍କଳ

ନବଜାତକ ମୋ ନବଉତ୍କଳ
ନିଖିଳ ସ୍ୱରଗେ ତୋଳିଛି ମଥା,
କୋଟି ଅନ୍ତରେ ଉଚ୍ଛୁଳଇ ଆଜି
ନବ ଭାବ, ନବ ପ୍ରଫୁଲ୍ଲତା ।

ରଜା ଫେରିଅଛି ଧାମ ଅଙ୍ଗନେ
ରଜା ଫେରିଅଛି କୃଷାଣ ମେଳେ,
ଦେଶର ଜାତିର ଇତିହାସ ବୁକେ
ନବ ମୟୂଖର କାନ୍ତି ଖେଳେ ।

ମହୋଦଧି ଆଜି ନାଚି ଉଠୁଅଛି
ଲୋଳ ହିଲ୍ଲୋଳ ନୃତ୍ୟ ତାଳେ,
କଂପିତ ନୀଳା ଭଙ୍ଗେ ଝଲକା
ଡାକଇ ସଜନୀ ଅଂଶୁପାରେ ।

ସ୍ଫୀତ ବକ୍ଷରେ ମହାନଦୀ କହେ
"କାଗ୍ ବରଥିଲେ ଆମର ଗାନ୍ଧୀ,
ମୋହର ଦେଶର ମଙ୍ଗଳଲାଗି
ବନ୍ଧ ମୁଁ ବୁକେ ନେଉଛ ବାନ୍ଧି ।"

ବ୍ରାହ୍ମୀ କହଇ ଋଷିକୁଲ୍ୟାରେ
"ବର ନେଇ ତାର ଜୀବନ ଆମେ
ଭରନେବା ଆମ ଜନ୍ମ ମାଟିକି
ଫୁଲ ଫଳ ତୃଣ ଶସ୍ୟ ଦାମେ ।"

କୋରାପୁଟ ବନେ ଝୁଞ୍ଜୁମା ନାଚଇ
"କାନନ-ରୋଦନ ହୋଇଛ ଶେଷ
ଦୀପ୍ତ ଆଲୋକେ ଅନ୍ଧାର କାଟି
ଆମେଇ ସେବବା ଆମର ଦେଶ ।"

ସମ୍ବଲପୁରେ ନୃସିଂହନାଥ
ଦେବଗଡ଼ଧାରେ ପ୍ରଧାନପାଟ
ବଣେଇ ଗହନେ ଖଣ୍ଡାଧାର ବ
ଶୁଣି ଉଲ୍ଲାସେ କରଇ ନାଟ ।

ବାୟୁ ହିଲ୍ଲୋଳେ ସଙ୍ଗରେ ଆଜ
ବଡ଼ ଦେଉଳର ହର୍ଷ ବାଣୀ,
"ପାଷାଣ ବୁକୁରେ ପଦ୍ମ ଫୁଟିବ
ଦେଶରେ ହସିବ ଶିଳ୍ପରାଣୀ ।"

ଭଗ୍ନ ଶସ୍ୟରେ ଆଶା ସଞ୍ଚାର
କୋଣାରକ କହେ ଧଉଳ-ମୁଖେ,
ଖିଚିଂ ହରଷେ ମଥାଟି ଟୋଳଇ
ମୟୂରଭଞ୍ଜ କାନନ ବୁକେ ।

ଭୁବନେଶ୍ୱର ବକ୍ଷ ଭିତରେ
ଉଚ୍ଛୁଳ ପଡ଼ଇ ଆତୁର ଆଶା,
"ଆମେ ଫୁଟାଇବା ଦେଶର ବାସନା
ଆମେ ଫୁଟାଇବା ଜାତିର ଭାଷା ।"

ସଜାଗ ଆମର ବାରବାଟୀ ଗଡ଼
ଚୌଦ୍ୱାରେ ଗୁହ୍ନିଁ ଖୋଲଇ ପ୍ରାଣ
"ଆମେ ରେ ଗଢ଼ିବା ନବ ଇତିହାସ
ଆମେଇ ଗଢ଼ିବା ଜାତିର ମାନ ।"

ଗିରିବନ ପଥେ ଖଣି ଅନ୍ଧାରେ
ବନ୍ଦମା ଧାତୁ ତୋଳଇ ସ୍ୱର,
"ଏଥର ଜାଣି ରେ ମୁକ୍ତ ହୋଇଲା
ରୁଦ୍ଧ ସକଳ ଦୁଆର ମୋର ।

ଏଥର ଯାଇ ମୁଁ ମୁକ୍ତ ଆଲୋକେ
ଘରେ ଘରେ ମୋର ଆସନ ନେବ,
ମର ଜୀବନରେ ଧନ୍ୟ ହୋଇବ
ଦେଶ ଜନତାର ଚରଣ ସେବ ।"

ନବଜାତକ ମୋ ନବ ଉତ୍କଳ
ନିଖିଳ ଭାରତେ ତୋଳିଛି ମଥା,
କୋଟି ଅନ୍ତରେ ଉଚ୍ଛୁଳଇ ଆଜ
ନବ ଭାବ, ନବ ପ୍ରଫୁଲ୍ଲତା ।

---

ଟିପ୍ପଣୀ.........

## ମାତଙ୍ଗିନୀ ଦେବୀ

ସୁକୁମାର ରାୟ ଓ ଅଜିତ ବସୁ ମଲ୍ଲିକଙ୍କର "ଅଗଷ୍ଟ ସଂଗ୍ରାମ ଓ ମେଦନାପୁରେ ଜାତୀୟ ସଂଗ୍ରାମ" ପୁସ୍ତକରୁ କଥା-ଭାଗ ଗୃହୀତ । ମାତଙ୍ଗିନୀ ଦେବୀ (ହାଜରା) ମେଦନୀପୁର ଜିଲ୍ଲାର ତମଲୁକ୍ ଥାନା ଅନ୍ତର୍ଗତ ହୋଗଲା ଗ୍ରାମରେ ଜନ୍ମ ଲଭ କରିଥିଲେ । ତାଙ୍କର ପିତାଙ୍କ ନାମ ଠାକୁର ଦାସ ମାଇତି । ବାଳିକା ବୟସରେ ଷାଠିଏ ବର୍ଷର ବୃଦ୍ଧ ତ୍ରିଲୋଚନ ହାଜରାଙ୍କୁ ବାହା ହେବା ଫଳରେ ୧୮ ବର୍ଷରେ ସେ ବିଧବା ହେଲେ । ତେଣୁ ସେ ଆତ୍ମନିୟୋଗ କଲେ ସ୍ୱଦେଶ ସେବାରେ । ବହୁବାର ସେ କାରା ବରଣ କରିଥିଲେ । ୧୯୪୨ ଅଗଷ୍ଟ ସଂଗ୍ରାମର ସେ ଜଣେ ଶହୀଦ ।

## ଆମ ଲଖି ଲୁଗା ଏଇ

ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନର ଗୋଟିଏ ସତ୍ୟ ଘଟନା । ସାଲେପୁରର ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମିଶ୍ରଙ୍କ ନିକଟରୁ ମୁଁ ଏ ଘଟନାଟି ଶୁଣିଥିଲି ।

## ବନ୍ଧୁ

ଦ୍ୱିଜେନ୍ଦ୍ର ଲାଲ ନିୟୋଗୀଙ୍କର True Tales of Indian life ରୁ କବିତାର କଥାବସ୍ତୁ ସଂଗୃହୀତ । ନିମାଇଁ ଶ୍ରୀ ଚୈତନ୍ୟ ଦେବଙ୍କର ନାମାନ୍ତର । ରଘୁନାଥ ଶିରୋମଣି ନ୍ୟାୟ ଦର୍ଶନର ଯେଉଁ ଭାଷ୍ୟ ଲେଖିଛନ୍ତି ତାହାର ନାମ "ଦୀଧିତି" ।

# ନେତାଜୀ ଓ ଗୁଣିଆ

ନେତାଜୀ ସୁଭାଷଚନ୍ଦ୍ରଙ୍କ ଜୀବନର ଗୋଟିଏ ସତ୍ୟ ଘଟଣା । ଏ କବିତାର ଉପାଦାନ ଅଧ୍ୟାପକ ଶ୍ରୀ ବନମାଳୀ ମିଶ୍ରଙ୍କଠାରୁ ମୁଁ ଶୁଣିଥିଲି ।

## ଡଅପୋଷ

ସୁପରିଚିତ ଖ୍ରଦୁବୁକୁଣି ଓଷା ବା ଡଅପୋଷ କଥାରୁ ମୁଁ ଉପାଦାନ ଗ୍ରହଣ କରିଅଛି, ମାତ୍ର ତର୍କଦୃଷ୍ଟିରୁ ଖଣ୍ଡନ ମଣ୍ଡନରେ କଳ୍ପିତ ସ୍ୱତନ୍ତ୍ରତାର ଆଶ୍ରୟ ନେଇଅଛି ।

---

